# ଉତ୍କଳ ବିଳାପ

ଉତ୍କଳମଣି ସ୍ୱର୍ଗୀୟ ଗୋପବନ୍ଧୁଙ୍କ

ସ୍ମୃତି ଉପଲକ୍ଷେ

କଟକ ଜିଲ୍ଲା ସୁନ୍ଦରଗ୍ରାମ ନିବାସୀ

ଶ୍ରୀ ବୀରନାରାୟଣ ମିଶ୍ରଙ୍କଦ୍ୱାରା

ରଚିତ

ଓ

ପ୍ରଥମବାର ପ୍ରକାଶିତ ।


କଟକ, ସତ୍ୟବାଦୀ ପ୍ରେସରେ

ଶ୍ରୀ ରାଧାନାଥ ରଥଙ୍କଦ୍ୱାରା

ମୁଦ୍ରିତ ।

୧୯୨୮




ମୂଲ୍ୟ ଠ ୦ /୬ ମାତ୍ର


GPNanda Colln., Digitized by srujanika@gmail.com



ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ।

GPNanda Colln., Digitized by srujanika@gmail.com

# ଉତ୍କଳ ବିଳାପ ।



ରେ ମନ୍ଦ ବିଧି ଆଜ କି ଦୁଃଖ ଦେଲୁ,
ମୋ ଗୋପଚନ୍ଦ୍ରମାକୁ ଛଡ଼ାଇ ନେଲୁ,
କି କଲି ଦୋଷ,
କେଉଁ କୁକର୍ମ ଦେଖି କଲୁ ତୁ ରୋଷ । ୧ ।

ଛନ କୋଟୀ ସନ୍ତାନ ମାର ମୋ ସଙ୍ଗେ
ପଠାଇଥାନ୍ତୁ ପ୍ରେତ ପୁରେ ତୁ ରଙ୍ଗେ,
ଗୋପ ମୋହର,
ବଞ୍ଚିଥିଲେ ସେ ମୋତେ ଥାନ୍ତା ଉଦ୍ଧାର । ୨ ।

ବିଧାତା ହୋଇ ଏଡ଼େ ନିର୍ମମ ହେଲୁ,
ମୋ ଗଳାମାଳ ଖଣ୍ଡି ଛିଣ୍ଡାଇ ନେଲୁ,
ନ କାଟି ଗଳା,
ଜୀବନ ରଖିଗଲୁ କାହିଁକି ଭଲା । ୩ ।

କି ଯଶ ଅରଜିଲୁ ମାରି ମୋ ଧନ,
କାହିଁକି ଦେଲୁ ମୋତେ ଏତେ କଷଣ,
ଏଡ଼େ ନିଷ୍ଠୁର
ହୋଇ ହରିଲୁ ଆଜ ମୋ ଗଳାହାର । ୪ ।

GPNanda Colln., Digitized by srujanika@gmail.com

ମୋ ଗୋପବନ୍ଧୁ ଚୋରି କଲି କି ମନ ?
ହରିଲୁ କାହିଁକି ମୋ ପୁତ୍ର ରତନ,
ମୋ ଜୀବଧନ
ଟଳି ଦିନୁ ହେଲଣି ମୋ କର୍ମ ବାମ । ୫ ।

ତାରାଗଣେ ଯେସନେ ଦିଶେ ଚନ୍ଦ୍ରମା,
ତେସନେ ଦିଶୁଥିଲା ମୋତେ ମୋ ବନ୍ଧୁ,
ଅପାର ଦୁଃଖ
ସହୁଛି ମୋହପାଇଁ ମୋ ଦୁଃଖୀରଙ୍କ । ୬ ।

ଅମରଗଣେ ଯେସନେ ଅମରପତି,
ତେସନ ଦିଶୁଥିଲା ଧନ ମୋ କତି,
କେତେ କଷଣ
ସହୁଛି ମୋହପାଇଁ ମୋ ଦୁଃଖୀଧନ । ୭ ।

ଦିବାକର ସମାନ ତେଜ ତାହାର,
ସତ୍ୟବନ୍ତ ଥିଲା ଯେସନେ ଯୁଧିଷ୍ଠିର,
କେତେ ଯାତନା
ସହିଲା ମୋହପାଇଁ ମୋ ଗୋପବନ୍ଧୁ । ୮ ।

ଭୀଷ୍ମ ସମାନ ଥିଲା ପ୍ରତିଜ୍ଞା-ବଦ୍ଧ,
ପ୍ରତିଜ୍ଞା କରି ସାଧୁଥିଲା ଅସାଧ୍ୟ,
କେତେ ବିପଦ
ଭୋଗିଥିଲା ମୋପାଇଁ କରୁଣ ସାଧୁ । ୯ ।

GPNanda Colln., Digitized by srujanika@gmail.com

ଜନକ ସମ ଗୃହୀ ଥିଲା ମୋ ସୁତ,
ଗୃହୀ ହୋଇଣ ଗୃହେ ନ ଥିଲା ରତ,
କେତେ ଯନ୍ତ୍ରଣା
ସହୁଥିଲା ମୋ ଧନ ମୋପାଇଁ ସିନା । ୧୦ ।

ନିରଳସ ଥିଲା ସେ ନାରଦ ସମ,
ଦିବା ନିଶି କରୁଣଥିଲା କରମ,
କରମ-ବୀର
ଥିଲା ଟି ସେହୁ ଏକା ଏହୁ ମହୀର । ୧୧ ।

ଭରତ ସମ ତ୍ୟାଗୀ ଥିଲା ମୋ ବୀର,
ରାଜସମ୍ପଦ ଥାଇ ହେଲା ଫକୀର,
ମୋହରପାଇଁ
ଖଟି ଜୀବନ-ଦୀପ ଦେଲା ଲିଭାଇ । ୧୨ ।

କର୍ଣ୍ଣ ସମାନ ଦାନୀ ଥିଲା ମୋ ସୁତ,
ଉତ୍ସର୍ଗ କରିଦେଲା ସକଳ ବିତ୍ତ,
ମୋର ମଙ୍ଗଳେ
ସମର୍ପି ଦେଲା ସବୁ ନ ରଖି ଛଳେ । ୧୩ ।

ଦୁର୍ଯ୍ୟୋଧନ ସମାନ ଥିଲୁ ତୁ ମାନୀ,
ବ୍ରିଟିଶ-କେଶରୀର ଆଜ୍ଞା ନ ମାନି,
ସ୍ୱଦେଶ ହିତେ
କାରାଗାରେ ପଶିଲୁ ନିର୍ଭୟ-ଚିତ୍ତେ । ୧୪ ।

GPNanda Colln., Digitized by srujanika@gmail.com

ଋଷିପ୍ରାଣ ତୋହର କେ ନେଲା କାଢ଼ି,
କେ ଦେଲା ଦୁଃଖିମାର ବକ୍ଷ ବିଦାରି,
କେଡ଼େ ଅଦ୍ଭୁତ
କର୍ମ ରେ ମନ ବନ୍ଧୁ ମୋହର ସାଥ । ୧୫ ।

ଐରାବତ ସମାନ ଥିଲୁ ତୁ ଧୀର,
ପଦ ଶବ୍ଦ ନ ଶୁଭେ ଚାଲିଲେ ତୋର,
ଧୀରେ ତୁ କର୍ମ
କରୁଥିଲୁ ସକଳ ନିବେଶି ମନ । ୧୬ ।

ନିଃସ୍ୱାର୍ଥପରପୂର୍ଣ ଦଧୀଚି ସମ
ଥିଲୁ ରେ ବାପ ତୁ ଏ ଉତ୍କଳ-ଧାମ,
ପର ହିତରେ
ଉତ୍ସର୍ଗ କଲୁ ପ୍ରାଣ ସ୍ୱଚ୍ଛ-ଚିତ୍ତରେ । ୧୭ ।

ଥିଲୁ ରେ ବାପ ଶିବ ସମାନ ଯୋଗୀ,
ପରପାଇଁ ସର୍ବଦା ବୁଲିଲୁ ମାଗି,
ପରର ଦୁଃଖ
ନ ଫେଡ଼ିଲେ ତୋହର ନ ହୁଏ ସୁଖ । ୧୮ ।

କିଛି ଦିନପାଇଁକି ହେଲୁ ଓକିଲ,
ନ ଲାଗିଲା ଭଲ ସେ ମିଥ୍ୟା ବେପାର,
ଦେଲୁ ତା ତେଜି,
ମୋର ସେବାରେ ଦେହ ଦେଲୁ ନିଯୋଜି । ୧୯ ।

GPNanda Colln., Digitized by srujanika@gmail.com

ତୋପରି ସାଧୁ ସୁତ ମୋର କୋଳରେ
ଧାରଣ କରୁଥିଲି ଗର୍ବ ମନରେ,
ମୋ ଗର୍ବ ଚୂର୍ଣ୍ଣ
କରିଦେଲା ବିଧାତା ହୋଇଣ ବାମ ! ୨୦ ।

ଦେଖି ଶାନ୍ତ ସରଳ ସ୍ୱଭାବ ତୋର
ନିଷ୍ଠୁର ହୃଅ ହେଉଥିଲା ସରଳ,
ସରବେ ତୋତେ
ନେତାରୂପେ ବରିଲେ ମୋହର ହିତେ । ୨୧ ।

ଯଥାର୍ଥ-ବାଦୀ ତୁହି ଏହି ମହୀରେ,
ଥିଲୁ ରେ ବାପଧନ ଗଲୁ କାହିଁରେ,
ତୋତେ ନ ଦେଖି,
କାନ୍ଦି କାନ୍ଦି ଜଳକା ହେଲାଣି ଆଖି । ୨୨ ।

ଧର୍ମପର ଧାର୍ମିକ ଥିଲୁ ରେ ଦୁଃଖ,
ଦୁଃଖ ପାସୋରିଥିଲି ଦେଖି ତୋ ମୁଖ,
କରମ ମନ୍ଦ,
ଛଡ଼ାଇ ନେଲା ପାଶୁଁ ଦଇବ ଅନ୍ଧ । ୨୩ ।

ବିବେକ ବୁଦ୍ଧି ମୁହିଁ ତୋର ନିରେଖି,
ହେଉଣଥିଲି ସଦା ଅନ୍ତରେ ସୁଖୀ,
ମୋ ସୁଖ ଗଲା,
ଯେଉଁ ଦିନୁ ବିଧାତା ଛଡ଼ାଇ ନେଲା । ୨୪ ।

GPNanda Colln., Digitized by srujanika@gmail.com

ନ୍ୟାୟପଣ ତୋହର ଦେଖି ସରବେ,
ପୂଜୁଣ ଥିଲେ ତୋତେ ଭକତଭାବେ,
କେତେ ଅନ୍ୟାୟ
ଆଚରିଲୁ ବିଧାତା ହୋଇ ନିର୍ଦ୍ଦୟ । ୧୫ ।

ଅହିଂସା ସାର ଧର୍ମ ଥିଲା ତୋହର,
ପାଇଣ ତୋତେ ଦୁଃଖ ଥିଲା ପାସୋର,
ନିର୍ଦ୍ଦୟ ବହି
ସଦୟ ନୋହି ହୃଦ ଦେଲୁ ମୋ ଦହି । ୧୬ ।

ତୋ ଅକପଟ ଚିତ୍ତ ଚିନ୍ତ ନିରତ,
ଅନନେ ନାଚୁଥିଲା ମୋହର ଚିତ୍ତ,
କପଟୀ ଧାତା
କେଣେ ଲୁଚାଇଦେଲୁ, ନ ଦଶେ ସତ୍ତା । ୧୭ ।

ନିରହଂକାର ପୂର୍ଣ୍ଣ ତୋର ଅନ୍ତର,
କୁବେର ହୋଇ ଗର୍ବ ନ ଥିଲା ତୋର,
ତୃଣ ସମାନ
ମଣୁଥିଲୁ ନିଜକୁ ରେ ବାପଧନ । ୧୮ ।

ପରର ଦୁଃଖ ଦେଖି ତୋର ହୃଦୟ
ଦୟାର୍ଦ୍ର ହେଉଥିଲା ନାହିଁ ସଂଶୟ,
ଦଇବ ଖର
ମୋହ ପାଶରୁ ତୋତେ କଲା ଅନ୍ତର । ୧୯ ।

GPNanda Colln., Digitized by srujanika@gmail.com

ତୋହପର ନିର୍ମଳ କାହାର ଚିତ୍ତ
ହୋଇବ କି ରେ ଅତ୍ର ସଂସାରେ ଜାତ,
ନିର୍ମ୍ମମ ବିଧି
ଛଡ଼ାଇ ନେଲା ପାଶୁଁ ମୋ ଗୁଣନିଧି । ୩୦ ।

ଅସୀମ ସାହସ ତୋ ଦେଖି ନୟନେ,
ଘୁଞ୍ଚିବ ଦୁଃଖ ମୋର ଅଳପ ଦିନେ,
ବାନ୍ଧିଲି ଆଶା,
ନ ପୂରି ଦଇବ ଏବେ କଲା ନିରାଶା । ୩୧ ।

ଉତ୍ସାହ-ଝର ସଦା ତୋର ଆନନ,
ଉତ୍ସାହପୂର୍ଣ୍ଣ ଅଟେ ତୋ ବାକ୍ୟମାନ,
ତୋପରି ସୁତ
ନୋହିଲୁ ନୋହିବ ରେ ମୋ କୋଳେ ଜାତ ।୩୨।

ରକ୍ତ ନୟନ ତୋର ସୌମ୍ୟ ବଦନ
ତୋଷୁଥିଲା ନିରତ ମାନବ ମନ,
ଦେଖିଣ ତୋତେ,
ଭକ୍ତି ଉପୁଜୁଥିଲା ସକଳ ଚିତ୍ତେ । ୩୩ ।

ହସିଣ ଦେଉଥିଲେ ତୋ ଦନ୍ତପନ୍ତି
ଦିଶୁଥିଲା ଯେସନେ ମୁକ୍ତାପଙ୍କତି,
ମାନବ ମନ
ମୋହୁଥିଲୁ ରେ ଭାଷି ପ୍ରିୟ ବଚନ । ୩୪ ।

GPNanda Colln., Digitized by srujanika@gmail.com

ବ୍ୟାସପରି ଦେଇଣ ସଦୁପଦେଶ
ତୋଷୁଣଥିଲୁ ସଦା ଜନ ମାନସ,
ତୋ ସାଧୁବାଣୀ
ଲଭୁଥିଲେ ଆନନ୍ଦ ସରବେ ଶୁଣି । ୩୫ ।

କୋମଳ ମଧୁର ତୋ ହୃଦ ବଚନ
ଆଉ ନ ଶୁଣିବ ରେ ମୋ ବେନି କର୍ଣ୍ଣ,
ହୃଦ କରଇ
ଦୁଏ ଭାବିଲେ ତୋର ଏସନ ରୀତି । ୩୬ ।

ଗୁଣିଗଣରେ ତୁହି ଥିଲୁ ଅଗ୍ରଣୀ
ସଦ୍ଧର୍ମ ନେଲୁ ଲୁହ ତୋ ଗୁଣ ଗୁଣି
ବିଶ୍ୱଭରତେ
ପାଇଲୁ ପୂଜା ତୁହି ସବୁ ସାଙ୍ଗାତେ । ୩୭ ।

ଦେଖିଲେ ପରଦୁଃଖ କାନ୍ଦୁ କରଇ,
ଛଡ଼ୁ ଆହାର ନିଦ୍ରା ନୁହେ ଯାବତ
ଦୁଃଖ ମୋଚନ,
ସେତେ ଧନଯାଏ ତୋ ନାହିଁ ବିଭ୍ରମ । ୩୮ ।

ଆପଣା ଶକ୍ତିମତେ ଦେଉ ତୁ ଦାନ,
ଶତ୍ରୁରୁ ବଳଲେ ତୁ ଭିକ୍ଷା ମାଗିଣ
କରୁ ପୂରଣ,
ଦରିଦ୍ରର ଅଭାବ ଦୁଏ ମୋଚନ । ୩୯ ।

GPNanda Colln., Digitized by srujanika@gmail.com

ପଥରପର ଛନ୍ତି ଅଛଇ ତୋର,
କେତେ କେତେ ବିପତ୍ତି ହୋଇଛୁ ପାର,
ଅନନ୍ତ ଶତ୍ରେ
କରୁଥାଉ କରମ ଭାଇଙ୍କ ହତେ । ୪୦ ।

ତୋ ଲକ୍ଷ୍ମୀ ସବୁକାଳେ ଥିଲା ମହତ,
ମହତ କର୍ମ କରୁଥିଲୁ ନିରତ,
ତୋ ସୁନାଦେହ
ଚୂନା କଲା ଦଇବ କାହିଁକି କହ ? । ୪୧ ।

ଧନ୍ୟ ସେ ରାମଚନ୍ଦ୍ର ତୋହର ଗୁରୁ,
ଫୁଙ୍କିଲା କର୍ଣ୍ଣେ ତୋର ବାଲ୍ୟକାଲରୁ,
ସ୍ୱାଧୀନ ମନ୍ତ୍ର
ସେ ମନ୍ତ୍ରବଳେ ତୁହି ହେଲୁ ପବିତ୍ର । ୪୨ ।

ନୀଳକଣ୍ଠ ହରିହର ଯେ ତୋହର
ବାଲ୍ୟକାଲରୁ ଥିଲେ ତୋ ସହଚର,
ତାଙ୍କ ସହତେ
ସ୍ୱାଧୀନତା ପ୍ରଶ୍ନର କଲୁ ନିରତେ । ୪୩ ।

ବ୍ରାହ୍ମଣ କୁଳେ ହୋଇଥିଲୁ ଜନମ,
ବ୍ରହ୍ମଜ୍ଞାନ ତୋହର ଥିଲା ଉତ୍ତମ,
ଆପଣା ପର
ପାର୍ଥକ୍ୟ ତୋହଠାରୁ ଥିଲା ଅନ୍ତର । ୪୪ ।

GPNanda Colln., Digitized by srujanika@gmail.com

ଚଣ୍ଡାଳ ହସ୍ତେ ଯେବେ ଅନ୍ନ ଭୋଜନ
ପତିତ ବଶରୁ କଲୁ ମୋ ଜୀବଧନ,
ତୋହର ତୁଲେ
ଅଞ୍ଜନ ଦୁଷ୍ଟ ଲୋକେ କଳା ଘଷିଲେ । ୪୫ ।

ଜନଗଣେ ପ୍ରଶଂସା କଲେ ବହୁତ
ଦେଖି ଏପରି ତୋର ମହତ ଚରିତ୍ର,
ସକଳ ଆତ୍ମା
ସମାନ ମଣୁଥିଲୁ ଅରେ ମହାତ୍ମା । ୪୬ ।

ବ୍ରିଟିଶ ଶାସନ ଫଳେ ମୋର ଅଙ୍ଗ
କୃଶତା ଲଭିଲା ରେ ମୋ ନରସିଂହ,
ମହାଯତନ
ତାରିବା ପାଇଁ କରିଥିଲୁ ମୋ ଧନ । ୪୭ ।

ଶରୀର ପତନ ବା କାର୍ଯ୍ୟ ସାଧନ
ସକଳ କାର୍ଯ୍ୟେ ଥିଲା ତୋହର ପଣ,
ମୋ କର୍ମ ବାମ—
ହେଉ ନ ହେଲୁ ବାବୁ ସଫଳ-କାମ । ୪୮ ।

ଆଉ ତ ବାବୁ ଦେଖୁ ନାହିଁ କାହାକୁ
ଯୋଡ଼ିବା ପାଇଁ ମୋର ଛିନ୍ନ ଅଙ୍ଗକୁ
ହେବ ସକ୍ଷମ,
ଯେ ଭଙ୍ଗିଲା ମୋହର ଏବେ କରମ । ୪୯ ।

GPNanda Colln., Digitized by srujanika@gmail.com

କରି କଠୋର ବ୍ରତ କଠିଣ ଶ୍ରମ
ଆଦର୍ଶ ବିଦ୍ୟାଳୟ ଗୁରୁ ଆଶ୍ରମ
ସତ୍ୟବାଦୀରେ
ଥାପିଲୁ ବାବୁ ବୁଦ୍ଧ ପୂର୍ବ ସ୍ଥଳରେ । ୫୦ ।

ଶତ ଶତ ବାଳକେ ଲଭିଣ ଶିକ୍ଷା
କଲେ ନିଜକୁ ମୂର୍ଖ ଦୋଷରୁ ରକ୍ଷା,
ଧନ ଅର୍ଜ୍ଜିନେ
ହେଲେ ସକ୍ଷମ ସର୍ବେ ତୋର କାରଣେ । ୫୧ ।

ଥିବ ଯାବତ ସତ୍ୟବାଦୀ ଇସ୍କୁଲ୍,
ଯାବତ ଥିବେ ଛାତ୍ର ସତ୍ୟବାଦୀର,
ତୋ ଯଶ ଲୋପ
ନୋହିବ ଧ୍ରୁବ କରି ଜାଣ ରେ ବାପ । ୫୨ ।

ଦେଶର ଦୁଃଖ ସୁଖ ପ୍ରଚାର ପାଇଁ
ସମାଜ ପତ୍ରିକାଟି ଦେଲୁ ଛପାଇ,
ସତ୍ୟ ଖବର
ପାଇ ହୋଇଲେ ଖୁସି ସାରା ଉତ୍କଳ । ୫୩ ।

କନକା ବିପ୍ଳବ କାଳେ ଅରେ ବାପ
କେତେ ଦୁଃଖ ସହିଲୁ ନାହିଁ ରେ ମାପ,
ଦୁଃଖିନୀ ହେତେ
ପଶିଲୁ କାରାଗାରେ ନିର୍ଭୟ-ଚିତ୍ତେ । ୫୪ ।

GPNanda Colln., Digitized by srujanika@gmail.com

ଲୁଣ ସୋଲ୍ଟାନ ଅନ୍ଦୋଳନ ରେ ତୁହି
କରିଥିଲୁ ତୋହର ଭାଇଙ୍କ ପାଇଁ,
ଅମ୍ଭ ନୃପତି
ଶୁଣିଲେ ନାହିଁ କର୍ଣ୍ଣେ ତୋର ବଚନ ି । ୫୫ ।

ପୁତ୍ତଜାଲ୍କାର ବନ୍ୟା ବିପ୍ଳବ କାଳେ
ଦୁର୍ଭିକ୍ଷରୂପୀ ରକ୍ଷ ଗିଳଲ୍ଭ ବଳେ
ପୁଅଙ୍କୁ ମୋର
ଅଲୌକିକ ଭାବେ ତୁ କଲୁ ଉଦ୍ଧାର । ୫୬ ।

ଖାଦ୍ୟ ଅଭାବେ ସର୍ବେ ଖାଇଲେ ଘାସ,
ନ ମିଳଲ୍ଭ କାହାକୁ ପିନ୍ଧିବା ବାସ,
ତେବେ ହିଁ ହେଲେ
ଅମ୍ଭ ନୃପତି ପ୍ରତିକାର ନ କଲେ । ୫୭ ।

ପ୍ରଚାରିଲୁ ସେ ଦୁଃଖ ସାରା ଭାରତେ,
ଭିକ୍ଷା ମାଗି ବୁଲିଲୁ ଦୁଃଖୀଙ୍କ ହିତେ,
ସରବ ଶେଷେ
କାନ୍ଦ କହିଲୁ ସରକାରଙ୍କ ପାଶେ । ୫୮ ।

ତୋର କନ୍ଦନ ଶୁଣି ସର୍କାର ହିଆ
କରୁଣେ ତରଳଲ୍ଭ କଲେ ସୁଦୟା,
କରୁଣ ଧନ
ପ୍ରଜାମାନଙ୍କ ହିତେ କଲେ ପ୍ରଦାନ । ୫୯ ।

GPNanda Colln., Digitized by srujanika@gmail.com

ଦସ୍ୟୁବୃନ୍ଦ ଚତ୍ର ଚୋର ଦେଖି ସକଳେ
ସଭ୍ୟ କରଣ ଲୁଚ ସତ୍ତ୍ୱ ପେଷିଲେ,
ଭାଇଙ୍କ ପାଇଁ,
ଅଳ କଲୁ ସର୍ବଦା ସେଠାରେ ଯାଇଁ । ୬୦ ।

ବ୍ରାହ୍ମଣୀ ଖରସ୍ରୋତ ବନ୍ୟାର ଜଳେ
କେନ୍ଦ୍ରାପଡ଼ା ଯାଜପୁର ବାସୀ ଭାସିଲେ,
ଚୋର ଦସ୍ୟୁରୁ
ବଞ୍ଚିଲେ ପୁଏ ମୋର ବନ୍ୟା କବଳୁ । ୬୧ ।

ଯେବେ ସେଠା ବିପଦ ଶୁଣିଲୁ କର୍ଣ୍ଣେ,
ହଂସା ଉଡ଼ିଲା ଚୋର କାନ୍ଦିଲୁ କ୍ଷଣେ,
ଯୁବକ ଦଳ
ଗଢିଲୁ କଟକରେ ହୋଇ ଅକୂଳ । ୬୨ ।

ହେଲୁ ରୁଦ୍ର ଅଗ୍ରଣୀ ସେହି ଦଳର,
ସଂଗ୍ରହ କଲୁ ଦେଶୁଁ ମୁଦ୍ରା ତଣ୍ଡୁଳ,
ବସି ନାବରେ
ବାଣ୍ଟିଲୁ ଛାଡ଼ା ନେଇ ସକଳ ଘରେ । ୬୩ ।

ଅସହଯୋଗ ମନ୍ତ୍ର ମହାତ୍ମାଙ୍କର
ରୁଦ୍ର ପ୍ରଥମେ ଏଥି କଲୁ ପ୍ରଚାର,
ଦାସୀ ପଣରୁ
ଉଦ୍ଧାରିବାକୁ ମୋତେ ଜୀବନ ଦେଲୁ । ୬୪ ।

GPNanda Colln., Digitized by srujanika@gmail.com

ସର୍କାର ସଙ୍ଗେ ନ ରଖିଲୁ ସଂପର୍କ,
ତେଜିଲୁ ସରକାରୀ ତୋ ପଦଯାକ,
ସ୍ୱାଧୀନ ଆଶା
ଗ୍ରାମେ ଗ୍ରାମେ ବୁଲିଲୁ ଦେଇଣ ଶିକ୍ଷା । ୬୫ ।

ସର୍କାରଙ୍କର କୋପ ଦୃଷ୍ଟି ତୋ'ପରେ
ପଡ଼ିଲା ଠାରେ ନ ଡରିଲୁ ତୁ ହେଲେ,
ଦେଲୁ ତୁ ଝାସ
କାରାଗାର ଅନଳେ କରିଣ ହାସ୍ୟ । ୬୬ ।

କାଞ୍ଚନକୁ ଅଗ୍ନିରେ କଲେ ଦହନ,
ଯେସନେ ବଢ଼େ ତାର ତେଜ ଦ୍ୱିଗୁଣ,
ତେସନେ ତୋର
ବଢିଲା ତେଜ କାରାଗାର ଭିତର । ୬୭ ।

କେଜାଣି ସରକାର କି ବୁଦ୍ଧି କଲା,
ଦୁଇ ବରଷ କାଳ ବନ୍ଦୀରେ ଦେଲା,
କେତେ କଷଣ
ସହିଲୁ ମୋହପାଇଁ ରଙ୍କରତନ । ୬୮ ।

ଦେଖି ନେତ୍ରରେ ବିଧବାଙ୍କ ଦୁର୍ଦ୍ଦଶା
ହୋଇଲା ତୋର ଚିତ୍ତ ଦୁଃଖେ ବିବଶା,
ବିଧବାଶ୍ରମ
ପୁରୀଧାମେ ବସାଇ ରଖିଲୁ ନାମ । ୬୯ ।

GPNanda Colln., Digitized by srujanika@gmail.com

ଯାବତ ଏ ଉତ୍କଳେ ବିଧବାଶ୍ରମ
ଥିବ ତାବତ ନ ଲୁଚିବ ତୋ ନାମ,
ବିଧବା ନାରୀ
ହେଲେ ଅନାଥା ଅଜଠାରୁ ମୋହର । ୭୦ ।

ଧନ୍ୟ ସେ ଲଜପତ ପଞ୍ଜାବସୁତ
ଲୋକସେବା ସମାଜ ଭାରତେ ଜାତ
କରନ୍ତି ବୀର,
ହେବାକୁ ଭାରତର ଦୁର୍ଦ୍ଦଶା ପାର । ୭୧ ।

ବୁଝି ଏ ସମାଜର ମହତ ଗୁଣ
ତହିଁରେ ଯୋଗ ଦେଲୁ ଗୁଣନିଧାନ,
ସାଥି ଉତ୍କଳୁ
ଏକା ଏ ମହା ଅନୁଷ୍ଠାନେ ମିଳିଲୁ । ୭୨ ।

ବୈତରଣୀ ବନ୍ୟାରେ ଯେ ଉତପାତ
ବାଲେଶ୍ୱର ଭଦ୍ରକେ ହେଲା ରେ ଜାତ,
ଘଟିଲା ଯାହା,
ହୃଦ ଥରଇ ମୋର ଭାବିଲେ ତାହା । ୭୩ ।

ଭାସିଗଲେ ଅସଂଖ୍ୟ ପଶୁ ମାନବ,
ଭାଙ୍ଗିଲା ବାସଭୂମି ଗୃହଦରବ,
ନ ପାଇ କୂଳ
ତେଜିଲେ ପ୍ରାଣ ଲୋକେ ହୋଇ ଅକୂଳ । ୭୪

GPNanda Colln., Digitized by srujanika@gmail.com

ପରଶେଷେ ରହିଲେ ଯେତେକ ଜନ
ତେଜିଲେ ପ୍ରାଣ ଅଶା ନ ପାଇ ଅନ୍ନ,
କେବା ବସନ
ନ ପାଇଣ ଲଭିଲ ଘୋର କଷଣ । ୭୫ ।

ଗୃହଅଢ଼ରେ ହାହାକାର ଶବଦ
ଶୁଣିଣ ଧନ ଛୁହି ହେଲୁ ସ୍ତବଧ,
ମୋ ଦୁଃଖୀଧନ
ଦୁଃଖମୋଚନ କଲୁ ସର୍ବସ୍ୱ ପଣ । ୭୬ ।

ପ୍ରାଣୀଙ୍କ ବଳକ ତୁ ସହି ନ ପାର,
ବକଲେ ଗୃହଅଢ଼େ କଲୁ ତୁ ଦୂର,
କାତର ଧ୍ୱନି
ନର୍ଦ୍ଦୟିଜନେ ଶୁଣି ହୋଇଲେ ପାଣି । ୭୭ ।

ଗୃହଅଢ଼ରୁ ଧନ ଉଣ୍ଡୁଳ ବାସ
ବଣି ବଣି ଅସିଲ ତୋହର ପାଶ,
ତେଜ ବିଶ୍ରାମ,
ବାନ୍ଧିଲୁ ତାହା ନେଇ ତୁ ଧନ ଦନ । ୭୮ ।

ଯାବତ ଥିବ ବାଲେଶ୍ୱର ଉଦ୍ଦଖ,
ତାବତ ଘୋଷୁଥିବେ ତୋ ଗୁଣପାକ,
କଏ ତୋ ପର
ଦୁଃଖୀଙ୍କ ଦୁଃଖ ଦେଖି ହୋଇବ ଘାର ।୭୯।

GPNanda Colln., Digitized by srujanika@gmail.com

ଦେଖି ତନ୍ତ୍ରକୁଳର ଉଚ୍ଛନ୍ନ ଦଶା
ବୁଲିଲୁ ଗ୍ରାମେ ଗ୍ରାମେ ଦିବସ ନିଶା
ଚରଖା ଘେନି,
ସୁତା କାଟିବା ପାଇଁ କଲୁ ଦଇନି । ୮୦ ।

ତୋର କରୁଣ ଧ୍ୱନି ପଶିଲା କର୍ଣ୍ଣେ,
ଜାଗି ଉଠିଲେ ସର୍ବ ଉତ୍କଳ ଜନେ,
ଚରଖା ଧରି
ସୂତା କାଟିଲେ ହସ୍ତେ ଦିବା ଶର୍ବରୀ । ୮୧ ।

ଆଦର ସୂତା ତନ୍ତ୍ରକୁଳ ଆନନ୍ଦ
ହୋଇ ବୁଣିଲେ ବସ୍ତ୍ର ନ କରି ଛନ୍ଦ,
ଉତ୍ତମ ଖଦି
ଦେଇ ପଇସା ନେଲେ ଅଞ୍ଚଳ ବାନ୍ଧି । ୮୨ ।

ବର୍ଜ୍ୟ ମଣିଲେ ସର୍ବେ ବିଦେଶୀ ପଣ୍ୟ,
ସ୍ୱଦେଶଜାତ ଦ୍ରବ୍ୟେ ରଖିଲେ ମନ,
କୁଳଅଙ୍ଗାରେ
ତୋହର ଉପଦେଶ ହେୟ ମଣିଲେ । ୮୩ ।

କବି ମଧ୍ୟେ ନୂତନ ତୁହି ନ ଥିଲୁ,
ଭାବପୂର୍ଣ୍ଣ କବିତାମାନ ରଚିଲୁ,
ତୋ’ ‘ଧର୍ମପଦ’
ପୋଥି ପଢିଲେ ବଢ଼େ ମୋର ପ୍ରମୋଦ । ୮୪ ।

GPNanda Colln., Digitized by srujanika@gmail.com

ତୋର 'ଗୋ ମାହାତ୍ମ୍ୟ' 'ଅବକାଶ ଚିନ୍ତା'
ବନ୍ଦଘରେ ରଚିଲୁ ତୋ 'ଆତ୍ମକଥା',
ତୋହ କବିତା
ପଢିଲେ ଦୁଃଖିଙ୍କର ବଢଇ ବ୍ୟଥା । ୮୫ ।

ମାଟିର ଏ ଶରୀର ମିଶୁ ମାଟିରେ,
ଦେଶବାସୀ ଗୃଲନ୍ତୁ ଏଥି ଉପରେ,
ବାଟର ଖାଲ
ମୋ ଅସ୍ଥି ମେଦେ ଭରି ପୂରଣ କର । ୮୬ ।

କାହାଠାରୁ ଏପରି ନିସ୍ୱାର୍ଥ ବାଣୀ
ଦେଶପାଇଁ ଶୁଣିବ ମୋ ଗୁଣମଣି,
କିଏ ଜୀବନ
ଦେଶପାଇଁ କି ଦେବ ଦଧୀଚି ସମ । ୮୭ ।

ଜୀବନ ଦେଲୁ ଜୀବ ସଙ୍ଗେ ତୁ ଦେଲୁ
ଧନ ଦୌଲତ ଯେତେ ତୁ ରଖିଥିଲୁ,
ସ୍ୱଦେଶ ହିତେ
ଉଇଲ କଲୁ ମାୟା ନ ରଖି ଚିତ୍ତେ । ୮୮ ।

ନ କାନ୍ଦ ଆଉ ଅଗୋ ଉତ୍କଳମାତ,
କାନ୍ଦ କାନ୍ଦ ଜଳକା ହେଲଣି ନେତ୍ର,
ଉତ୍କଳମଣି
ଛାଡ଼ି କି ପାରେ ତୋହପରି ଜନନୀ । ୮୯ ।

GPNanda Colln., Digitized by srujanika@gmail.com

ଯେ ମଣୁଥିଲ୍ଲ ତୋର ମାଟି ଚନ୍ଦନ,
ତୋ ଜଳ ଫଳ ମୂଳ ଅମୃତ ସମ,
ତୋହର ବାସ
ସ୍ୱର୍ଗ ସମାନ ମଣୁଥିଲ୍ଲ ପ୍ରତ୍ୟକ୍ଷ । ୯୦ ।
ତୋ ପଦସେବା ଥିଲ୍ଲ ଯା ପୂଣ୍ୟବ୍ରତ,
ତୋ ହିତେ ଢାଳିବାକୁ ଯେ ନିଜ ରକ୍ତ
ମଣିଲ୍ଲ ହିତ,
ଖଡ୍ଗକ ପାରେ ତୋତେ ସେପର ସୁତ । ୯୧ ।
ପ୍ରତୀତ ହୁଏ ମୋର ଜଗତପତି
ନୀଳାଚଳ ଖଡ଼ଣ ସ୍ୱରଗେ ଛନ୍ତି,
ଦେଇ କଲ୍ୟାଣ
ସାଧୁ ଅଛନ୍ତି ସ୍ୱର୍ଗେ ଚକାନୟନ । ୯୨ ।
ହାର୍ ଅସହଯୋଗ ଯୁଦ୍ଧେ ତୋ ସୁତ
ଆଣିବା ପାଇଁ ଗଲେ ଜଗତନାଥ,
ଜଗା ବଳିଆ
ଆସିବେ ଘୋଡ଼ା ଚଢି ଧଳା କାଳିଆ । ୯୩ ।
ଅସହଯୋଗ ଯୁଦ୍ଧେ କରି ସମର
ଜିଣିବେ ମ୍ଳେଚ୍ଛଗଣ ନୁହ୍ନ କାତର,
ତୋର କଷଣ
ଫେଡ଼ିବେ ନିକର ନର ନାରାୟଣ । ୯୦ ।



ସମାପ୍ତ ।

Printer—R. N. Rath, the Satyabadi Press, Cuttack.

GPNanda Colln., Digitized by srujanika@gmail.com

